# ଭାଇଜିଉନ୍ତିଆ

## ଓଷାକଥା

ବା

## ଦୁର୍ଗାଷ୍ଟମୀ ବ୍ରତ ଓ ଦୁର୍ଗାମାଳଶ୍ରୀ

[ ନୂତନ ମୁଦ୍ରଣ ]

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ଧର୍ମଗ୍ରନ୍ଥ ଷ୍ଟୋର ଅର୍ଥାନୁକୂଲ୍ୟରେ

ପ୍ରକାଶକ—ଶ୍ରୀ ନରସିଂହ ଆଚାର୍ଯ୍ୟ

ମୂଲ୍ୟ—~~ଏକଟଙ୍କା ପଚିଶ ପଇସା~~ ମାତ୍ର

# ଭାଇଜିଉନ୍ତିଆ ଓଷାକଥା

ବା

## ଦୁର୍ଗାଷ୍ଟମୀ ବ୍ରତ ଓ ଦୁର୍ଗାମାଳଶ୍ରୀ

ତୃତୀୟ ସଂସ୍କରଣ



ପ୍ରକାଶକ ଓ ପ୍ରାପ୍ତିସ୍ଥାନ :
ଶ୍ରୀ ନରସିଂହ ଆଚାର୍ଯ୍ୟ
ବାସୁଦେବ ପୁସ୍ତକାଳୟ
ସା: ମୁ: ପୋ: ରାଇଗଡ଼, ମଧ୍ୟପ୍ରଦେଶ

ମୂଲ୍ୟ—ଏକଟଙ୍କା ପଚିଶ ପଇସା



# ଭୂମିକା

ପବିତ୍ର ଭାରତଖଣ୍ଡରେ ପ୍ରାୟ ଅଧିକାଂଶ ହିନ୍ଦୁ ପରିବାର ଭ୍ରାତୃମଙ୍ଗଳ କାମନାରେ ପ୍ରାୟ ଏହି ଉପାସନାଟି ପ୍ରତିପାଳିତ କରିଥାନ୍ତି । ବିଶେଷତଃ ଓଡ଼ିଶା ଅଞ୍ଚଳରେ ଏହି ଭାଷା ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତିଥିରେ ବିଶେଷ ଭାବରେ ସମାହିତ ହୁଏ । ଏହି କଠିନ ଅନଶନ ତପସ୍ୟାରେ ଉପାସନା ଶୁଭବାସରେ ଭ୍ରାତୃସମାଜକୁ କଲ୍ୟାଣ ବୃଦ୍ଧି ହୋଇଥାଏ ।

ସେହି ଉପାସନାର ଉଦ୍ଦେଶ୍ୟରେ ଏହି ଭାଇଜିଉନ୍ତିଆ ବ୍ରତକଥା କ୍ଷୁଦ୍ର ପୁସ୍ତକଟି ଅନେକ ଦିନ ତଳେ ବାହାରି ପୁନଶ୍ଚ ଲୋପହୋଇ ଯାଇଥିବାରୁ, ଆମ୍ଭେ ବହୁ ପରିଶ୍ରମରେ ସଂଗ୍ରହ କରି ଓ ବହୁ ଅର୍ଥ ବ୍ୟୟକରି ପୁନଃ ସଂସ୍କରଣ କଲୁ ।

ସମସ୍ତ ଭଗିନୀମାନଙ୍କୁ ହୃଦୟରେ ଭ୍ରାତୃସ୍ନେହ ରଖି ଭାଇଜିଉନ୍ତିଆ ପୁସ୍ତକଟି ପଠନ ଶ୍ରବଣ କରିବେ । ତାହାହେଲେ ମୋର ଶ୍ରମ ସାର୍ଥକ ଯଥେଷ୍ଟ ମନେ କରିବି । । ଇତି ।

ପ୍ରକାଶକ

ଶ୍ରୀ ନୃସିଂହ ଆଚାର୍ଯ୍ୟ

ବାସୁଦେବ ପୁସ୍ତକାଳୟ

ପ୍ରୋପ୍ରାଇଟର

# ଶ୍ରୀ ଜଉନ୍ତିଆ ଓଷା କଥା

## ପ୍ରଥମ ଛାନ୍ଦ

ବନ୍ଦଇ ଜଗତ ଜନନୀ ଗିରିରାଜ ନନ୍ଦନୀ
ହର ମୋ ଦୁର୍ଗତି ଦୁର୍ଗେ ମା ହର ମନମୋହିନୀ ।
ନୂପୁର ରଞ୍ଜିତ ଆରକ୍ତ ମୃଦୁପଦ୍ମ-ଚରଣେ
ସତତ ଶରଣ ରଖ ମା ଏ ଦୀନ ଅକିଞ୍ଚନେ
କାଞ୍ଚନ ନନ୍ଦିତ ଶ୍ରୀଅଙ୍ଗେ ରକ୍ତ ଅମ୍ବର ସାଜେ
କରୀନ୍ଦ୍ର ଗମନେ ମଧୁର କଟି କିଙ୍କିଣୀ ବାଜେ ।
ବାହେ ବାଜବନ୍ଧ ଶୋଭଇ କରେ ମର୍କତ ଚୂଡ଼ି
ବକ୍ଷ ଦେଶେ ହୀରା ପଦକ ହେମ କମଳ କଢ଼ି ।
ଦଶଭୁଜେ ଦଶ ଆୟୁଧ ଦର୍ପି ଦର୍ପ ଦଳନେ
କଣ୍ଠେ ରୂପସରି, ସୁବର୍ଣ୍ଣ ଝାପ ଯୁଗଳ କର୍ଣ୍ଣେ ।
ମନ୍ଦାର ଅଧର, ସ୍ଫଟିକ ଜିଣି ଦଶନ ପନ୍ତି ।
ନାସାପୁଟେ ମୁକ୍ତା ବସଣୀ ଶୋଭେ ଝଟକ ଜ୍ୟୋତି ।
ଖଞ୍ଜନ ନୟନେ ଅଞ୍ଜନ ଭାଲେ ସିନ୍ଦୂର ବିନ୍ଦୁ
ସୁବର୍ଣ୍ଣ ମେଘ କି ଉଇଁଛି ବାଳ କୁମୁଦ ବନ୍ଧୁ ।
ଭ୍ରମର ନନ୍ଦିତ କୁଞ୍ଚିତ ବେଣୀ ଝୁଲୁ କୁନ୍ତଳେ—
ବିକାଶଇ ସାର ସୁଷମା ବେଢ଼ା ବକୁଳ ମାଳେ ।
କିରୀଟି ମୁକୁଟ ଝଟକ ଶୋଭେ ତଥି ଉପର,
ସୁବର୍ଣ୍ଣ ଶିଖରୀ ଶିଖରେ କି ଅବା ଦିବାକର ।
ଲମ୍ବିଛି ସର୍ବାଙ୍ଗେ ବହଳ ଫୁଲ୍ଲ ମନ୍ଦାର ମାଳ,
ଶୋଭାସରେ ଡୁବ ରହିଛି ଭକ୍ତ ଚିତ୍ତ ମରାଳ ।
ସଂସାର ସୁଷମା ଶରଣ ଯାର ଚରଣ ତଳେ,
ସଂସାର ବର୍ଣ୍ଣିବ ରୂପମାଧୁରୀ ଜନ୍ମି ଅଧମ ତଳେ ।

ତୋହର ଉପମା ତୁହି ମା ଜୟ ସିଂହବାହିନୀ
ଅଭକ୍ତ କୁଞ୍ଜର କୃତାନ୍ତ ଭକ୍ତ ଚିତ୍ତ ତୋଷିଣୀ ।
ଦୁରନ୍ତ ଦଇତ ମହିଷାସୁର ପ୍ରବଳ ତାପେ—
ତାପିତ ଦେବଙ୍କ ଆତଙ୍କ ଯେବେ ଖଣ୍ଡିବ ଆପେ ।
ଚଣ୍ଡୀ ଚାମୁଣ୍ଡାଦି ସଙ୍ଗତେ ବିନ୍ଧ୍ୟଗିରି ବାସିନୀ—
ଅଯୋନିସମ୍ଭବା ପ୍ରକାଶ ହେଲୁ ଆଦ୍ୟ ଜନନୀ ।
ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁ ରକ୍ତବୀର୍ଯ୍ୟ ଆଦିର
ଆତ୍ମଶକ୍ତି ଶକ୍ତି ବିସ୍ତାର ଦୈତ୍ୟ କଲୁ ସଂହାର ।
ବୃନ୍ଦାବନରେ ମତ୍ତ ଅସୁର ତ୍ରିଭୁବନ ବିଜୟୀ
କାମାତୁରେ ହେଲା ପ୍ରବେଶ ତୋର ଗୁମ୍ଫରେ ଯାଇ ।
ତା ତୁଲେ ସମର ଆଚରି ଚଣ୍ଡୀ ଚାମୁଣ୍ଡା ଯେବେ
ଅକ୍ଷୟ ତୂଣୀରୁ ଶର ଗୋ ଶେଷ ହୋଇଲା ତାକେ ।
ଦିଗାମ୍ବରୀ ରକ୍ତବସନା ମୁକ୍ତକେଶୀ କରାଳୀ,
ଲୁପିଲୁ ମହିଷା ଦଇତ ନେତ୍ର ଅନଳ ଜାଳି ।
ରଣେ ଜୟ କଲୁ ଆଶ୍ୱିନ ଶୁକ୍ଳ ଦଶମୀ ତିଥି
ବିଜୟା ଦଶମୀ ଖିତିରେ ତେଣୁ ଲଭିଲା ଖ୍ୟାତି ।
ସତ୍ୟେ ସତ୍ୟବ୍ରହ୍ମ ଦେହରେ ରାମ ଚିନ୍ତିଲେ ମନେ
ରାମଚଣ୍ଡୀ ନାମ ବହିଲୁ ଦୁଃଖ ଦୁଃଖନାଶନେ । ୨୦ ।
ଅନନ୍ତ ଶୟନେ ଶ୍ରୀହରି ତୋତେ କଲେ ଆଦେଶ
କଂସ ବନ୍ଦୀଘରେ ଦ୍ୱାପରେ ଆସି ହେଲୁ ପ୍ରବେଶ ।
ଶିଳାରେ ପିଟନ୍ତେ ରାକ୍ଷସ କରୁ ଅନ୍ତର ହୋଇ
ଶୂନ୍ୟେ ରହି ମୃତ୍ୟୁଭେଦଟି ତାକୁ ଦେଲୁ କହାଇ ।
ଦୁର୍ଗତି ହରଣେ କଳିରେ ଦୁର୍ଗା ବୋଲାଉ ମାତ
ଅଭୟ ଦାନରେ ଅଭୟା ସର୍ବ ଯୁଗରେ ଖ୍ୟାତ ।
ଜଗତ ମଙ୍ଗଳ କାରଣେ ସର୍ବ ମଙ୍ଗଳ ହେଉ
ଗ୍ରାମେ ଗ୍ରାମେ ଗ୍ରାମ-ଦେବତା ନାମେ ତୁ ପୂଜା ପାଉ ।

ବାଳକା ବାଉଣ୍ଡ ମାଉଣ୍ଡ ପିତାବଳୀ ଆଦର
ସ୍ଥାନେ ସ୍ଥାନେ ନାମ ପ୍ରକାଶ ଏକୁଁ ଅନେକ ତୋର ।
ସମ୍ବଲପୁରରେ ଉଜ୍ବଳ ନାମ ସମଲେଶ୍ୱରୀ,
ସ୍ୱର୍ଣ୍ଣପୁରେ ନାମ ପ୍ରକାଶ ଅଉସ୍ଥା ସୁରେଶ୍ୱରୀ ।
ପାଟଣେଶ୍ୱରୀ ତୁ ବୋଲାଉ ପାଟଣାରେ ନିବାସ
ଯେ ତୋତେ ଯେ ଭାବେ ଭାବଇ ତେତେ ହେଉ ତୁ ବଶ ।
ସାତ୍ତ୍ୱିକ ଶାକ୍ତିକ ଏ ବେନି ଭାବେ ଭକତଗଣ,
ପଞ୍ଚମକାରରେ ସେବନ୍ତି ତୋ ଅଭୟଚରଣ
ଅହିଂସା ପରମ ଧରମେ କେତେ ଲଗାଇ କାଳ
ମାଆଗୋ ତୋ ଆଗେ ଛେଦିଲେ କେତେ ଜୀଅନ୍ତ ଛେଳି ।
ମାଆ ଗୁଡ଼ି ତେଣୁ ମାଉସୀ ସେବା କଲେ ଯୁକତେ ।
ଏ ମାର୍ଗେ ସେବିଲେ କେସନେ ମାତା ଲଭିବେ ତୋତେ ।
ତାର ମା ତାରଣୀ ତାର ଗୋ ତୋର ଗଲି ଶରଣ
ଦ୍ୱିଜ ଗୋବିନ୍ଦଚନ୍ଦ୍ରେ ଦିଅ ମା ତୋ ପଦ୍ମଚରଣ ।୩୦।



## ଦ୍ୱିତୀୟ ଛାନ୍ଦ

ଶୁଣ ଆଗୋ ମାଆ ଭଉଣୀ ଓଷାଇନ୍ତି ଯେତେକ,
ମହାଷ୍ଟମୀର ଏ ଚରିତ କ୍ଷୟ ହେବ ପାତକ ।
ଶ୍ରବଣେ ଏ ବ୍ରତ ସୁନ୍ଦର କ୍ଷୟ ହେବ ତତକ୍ଷଣ
ଧନ ପୁତ୍ରବନ୍ତ ହୋଇବ ଯଶ ଆୟୁ ବର୍ଦ୍ଧନ ।
ଘରର ମଙ୍ଗଳ ମନାସି ଶୁଣ ଅଷ୍ଟମୀ କଥା,
ଅରିଷ୍ଟ ଛୁଟିବ ଘରର ଯିବ ଏ ଉଭ ବ୍ୟଥା ।
ଜନମୁଁ ମୂରୁଖ ଅଟଇ ମାଆ କୃପାରୁ ଯିନା
ଅଷ୍ଟମୀ ବରତ କରୁଛି ଦୁଃଖ ନଷ୍ଟଳ ମନା ।
ପିତା ସତ୍ୟ ପାଳି ଶ୍ରୀରାମ ଭାଇ ଭାରିଯା ଘେନି
ବନବାସୀ ହେଲେ ବରଜ ଅଯୋଧ୍ୟା ରାଜଧାନୀ ।

ପଞ୍ଚବଟୀ ବନେ କୁଟୀର କରି କଲେ ନିବାସ
ଜନକ ନନ୍ଦିନୀ ଚୋରାଇ ନେଲା ଦୁଷ୍ଟ ରାକ୍ଷସ ।
ବୁଲି ବୁଲି ବେନି ସୋଦର ଭାଲୁ ବାନର ମେଳେ,
ସାଗରରେ ସେତୁ ବାନ୍ଧିଲେ ସୀତା ଉଦ୍ଧାର ଛଳେ ।
ସୁବେଳ ପର୍ବତେ ଶ୍ରୀରାମ ସ୍ଥାପି କପି ଶିବିର,
ବିଭୀଷଣେ ରଖି ଶରଣେ ଯୁଦ୍ଧେ ହେଲେ ବାହାର ।
ହନୁ ଅଙ୍ଗଦ ନଳ ନୀଳ ସୁଗ୍ରୀ ସଙ୍ଗେ ଲକ୍ଷ୍ମଣ
ହେଲେ ଦୈତ୍ୟବଳ ନାଶିଲେ ରଣେ ସେ ବିଚକ୍ଷଣ ।

ମହୀରାବଣ ବୀରବାହୁ କୁମ୍ଭକର୍ଣ୍ଣ ଆବର,
ସମରେ ପଡ଼ିଲେ ସୁବାହୁ ଇନ୍ଦ୍ରଜିତ କୁମର ।
ଅବଶେଷ ଯୁଦ୍ଧେ ବାହାର ଆସି ବିଶ୍ରବାସୁତ
ଦଶବାଉ ଶିର ଛେଦିଲେ ଶରେ ଜଗତନାଥ ।

ହନୁମାନ ତାଙ୍କ ଶ୍ରୀମୁଖେ ରାମ ଆଦେଶ ଦେଲେ
ଦୁର୍ଗତିନାଶିନୀ ଦୁର୍ଗାଙ୍କ ପାଦପଦ୍ମ ଯୁଗଳେ,
ପୂଜିବି ବହନ ଆଣ ଯା ଦେବୀ ହ୍ରଦୁ କମଳ ।
ଗୋଟି ଗୋଟି କରି ଲକ୍ଷେକ ଶତଦଳ କମଳ,
ସ୍ଥିର ମନେ ହେଳ ଆଣିବୁ ଗଡ଼ ନ ଯାଉଁ ବେଳ ।

ପ୍ରଭୁ ଆଜ୍ଞା ଶିରେ ଧରିଣ ହନୁ ବିହମି ଗଲା,
ଦେବୀ ହ୍ରଦ ତଟେ ଯାଇଣ ବେଗେ ପ୍ରବେଶ ହେଲା ।
ଗୋଟି ଗୋଟି କରି ଲକ୍ଷେକ ପଦ୍ମ ତୋଳି ମାରୁତି,
ଶ୍ରୀରାମ ନିକଟେ ପ୍ରବେଶ ହେଲା ଆସି ଝଟତି ।

ଜଗତ ଜନନୀ ଶ୍ରୀରାମ ମନ ବୁଝିବା ପାଇ,
ଅଦୃଶ୍ୟ କରିଲେ ଫୁଲେକ ଶୂନ୍ୟମାର୍ଗରେ ଥାଇ ।
ପଦ୍ମ ଫୁଲ ଦେଖି ଶ୍ରୀରାମ ମନେ ହରଷ ହେଲେ,
ଦଶଭୁଜା ବିଧି ବିଧାନମାନ ଯୋଗାଡ଼ କଲେ ।

ପୂର୍ଣ୍ଣକୁମ୍ଭ ଚୂତ ପଲ୍ଲବ ନାରିକେଳ ସ୍ଥାପିଲେ
ତଉଦ୍ୱେଗେ କପି ସେନାଏ ଜାନୁ ପାତି ବସିଲେ ।
ଲକ୍ଷ୍ମଣ ସଙ୍ଗତେ ଶ୍ରୀରାମ ବସି ପଦ୍ମ ଆସନେ
ଦୁର୍ଗାପାଦେ ସ୍ତୁତି କରନ୍ତି ଗୂଢ ବେଦ ବଚନେ । ୨୦ ।
ଦୁର୍ବାକ୍ଷତ ବିଲ୍ୱ ପଲ୍ଲବ ସଙ୍ଗେ ବାସ ଚନ୍ଦନ
ନୈବେଦ କରନ୍ତି ଜଗତ ଜନନୀ ଆବାହନ ।
ମାଳ ମାଳ କରି ମନ୍ଦାର ମାଳ ଦେଲେ ଲମ୍ବାଇ
ଉକତ ବସ୍ତ୍ରକା ବେଢ଼ିଲେ ଅନ୍ତଗ୍ରନ୍ଥରେ ଥାଇ ।
ଧୂପ ଦୀପ ଅନ୍ନେ ନୈବେଦ୍ୟ ପକ୍ୱ ଚମ୍ପା କଦଳୀ
ସମର୍ପିଣ ନତ ମସ୍ତକେ ଦେଲେ ପୁଷ୍ପ ଅଞ୍ଜଳି ।
ଚଣ୍ଡିକା ଚରଣ ଯୁଗଳ ରାମ ହୃଦରେ ଧ୍ୟାୟୀ
ଗୋଟି ଗୋଟି ଗଣି କମଳ ସବୁ ଦେଲେ ଚଢ଼ାଇ ।
ଲକ୍ଷେ ପଦ୍ମ ଫୁଲ ଗୋଟିଏ ଫୁଲ ହୋଇଲା ଊଣା
ବିସ୍ମୟ ହୋଇଲେ ଶ୍ରୀରାମ ଦେଖି କଲେ ଗଣନା ।
ହନୁମାନ ମୁଖ ଅନାଇ ରାମ କହନ୍ତି ଧୀରେ
ଏକଲକ୍ଷ ପଦ୍ମ ଗୋଟିଏ ଊଣା ହେଲା ବଧିରେ ।
କରଯୋଡ଼ି ହନୁଁ ବିନୟେ ଭାଷେ ପବନ ସୁତ
ତବ ଆଜ୍ଞା ଶିରେ ଧରିଣ ଚଳି ହେ ରଘୁନାଥ ।
ଦେଖ ହନୁଁ ଦେବ ଲକ୍ଷେକ ଫୁଲ ଆଣିଲି ଗଣି
ଊଣା ହେଲା ଫୁଲ କାହିଁରି ନ ପାରିଲି ତା ଜାଣି ।
କୃପାବନ୍ତ ଦାସେ ଶ୍ରୀମୁଖ ହେଉ ଆଦେଶ ବାରେ
ପଦ୍ମବନେ ଯାଇ ଫୁଲେକ ନେଇ ଆସିବି ଖରେ ।
ମନେ ହସି ରାମ କହିଲେ ବସି ନ ଯାଅ ତୁହି
ଘଟିଥିବା ପଦ୍ମ ପୂରଣ ପାଇଁ ଉପାୟ ଅଛି ।
ଦାସଠାରେ ଛନ୍ଦ କଲେଣି ନଷ୍ଟ ଜଗତମାତ
ଆଚରିଲେ ମାୟା ଅଭୟା ଏହା ହୁଏ ପ୍ରଜ୍ଞାତ । ୩୧ ।

ପଦ୍ମ ନୟନ ତ ବୋଲନ୍ତି ମୋତେ ଜଗତଯାକ
ପଦ୍ମନେତ୍ର ନାମ ମୋହର ଆଜ ହେଉ ସାର୍ଥକ ।
କମଳ ଅଭାବେ କମଳ ନେତ୍ର ମାତ୍ର ଚରଣେ
ଅରପିଣ ପୂଜା ସାରିବ ଅଛି ଆନନ୍ଦ ମନେ ।
ଏତେ କହି ରାମ ତୂଣୀରୁ କାଢ଼ି ସୁତୀକ୍ଷଣ ଶର
ପଙ୍କଜ ନୟନ ଖୋଳିବା ପାଇଁ ହେଲେ ବାହାର ।
ଶର ଯେବେ ଚକ୍ଷୁ ଖୋଳନ୍ତ ବେଳେ ଜଗତମାତ
ଉଗ୍ରହୋଇ ଦେବୀ ଧଇଲେ ବେଗେ ଶ୍ରୀରାମ ହସ୍ତ ।
ମୃଦୁ ମୃଦୁ ହସି ଭାଷନ୍ତି ଦେବୀ ମଧୁର ଗୀର
କ୍ଷାନ୍ତ ହୁଅ ବତ୍ସ ବୃପତେ ଏତେ ନୁହ ଅଧୀର ।
ବ୍ରହ୍ମା ବରେ ବଳୀ ରାବଣ ତ୍ରିଭୁବନ ବିଜୟୀ
ବ୍ରହ୍ମଶରେ ବଧି ରାକ୍ଷସ ଉଦ୍ଧାର ବଇଦେହୀ ।
ଦୁଷ୍ଟ ନାଶି ସନ୍ଥ ପାଳନ ସୁଖ କର ଅବନୀ
ଆଜଠାରୁ ମୁହିଁ ତେଜିଲି ଏ ଲଙ୍କା ରାଜଧାନୀ ।
ଭାବ ଦେଖି ବଶ ହୋଇଲି ବତ୍ସ ସେବା ବିଧିରେ
ରାମନାମ ପଢ଼ ସର୍ବଦା ଘୋଷୁଥିବେ ମହୀରେ ।
ମହାଷ୍ଟମୀ ନାମେ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଦିନ
ଯେ ମୋତେ ପୂଜିବେ ଲଭିବେ ଅନ୍ତେ ମୋର ଚରଣ ।
ଧନ ଜନ ଯଶ ଆୟୁଷ ବୃଦ୍ଧି ହୋଇବ ଶିଘ୍ର
ଚତୁର୍ବର୍ଗ ଫଳ ଲଭିବେ ଶ୍ରଦ୍ଧା ଭକତି କରି ।
ଅପୁତ୍ରିକ ସ୍ତ୍ରିୟ ଶ୍ରଦ୍ଧାରେ ମୋତେ ପୂଜିବେ ଯେବେ
ବିଷ୍ଣୁଭକ୍ତ ପୁତ୍ର କୋଳରେ ଜାତ ହୋଇବ ତେବେ ।
ଛୁଆମାନଙ୍କର ମଙ୍ଗଳ ମନେ କାମନା କରି
ବ୍ରତ ଚଢ଼ାଇଲେ ଚରଣେ ଛୁଇ ଅରିଷ୍ଟ ହରି ।
ଶଏଆଠ ଦୁବ ଅକ୍ଷତ ଦେଲେ ରହି ଉପାସ
ଶଏଆଠ ବର୍ଷ ଛୁଆର ବୃଦ୍ଧି ହେବ ଆୟୁଷ ।

ମାନ ବଢ଼ିବାକୁ ହରିଲ ଗୁପତେ ପଦ୍ମ ଫୁଲ
କୁଷ୍ମାଣ୍ଡ ଫୁଲଟି ହୋଇବ ସ୍ୱର୍ଣ୍ଣ କମଳ ତୁଲ ।
ମହାଅଷ୍ଟମୀରେ ଏ ଫୁଲ ମୋର ଚରଣେ ଦେଲେ
ଲକ୍ଷେ ସ୍ୱର୍ଣ୍ଣ ପଦ୍ମ ଫୁଲର ତୁଲ ହୋଇବ ଭଲେ ।
ଖୋଜୁଥିଲେ ଶରେ ନୟନ ସୀତା ଉଦ୍ଧାର ପାଇଁ
ସୀତାଫଳ ଆଜ ମୋହର ବଡ଼ ଶରଧା ହୋଇ ।
ଅତିସୁଲକ୍ଷଣୀ ସ୍ତ୍ରୀଏ ଉପବାସରେ ରହି
ସୀତା ଫଳ ଯେବେ ଚରଣେ ମୋର ଦେବେ ଚଢ଼ାଇ ।
ଦୁଃଖ ଚିନ୍ତା ଯାଇ ଘରର ସୁଖ ବୃଦ୍ଧି ହୋଇବ
ରୋଗ ଶୋକ ମୋର ପ୍ରସାଦୁ ତାର ଦୂରେ ରହିବ ।
ନାରିକେଳ ଚମ୍ପା କଦଳୀ ଆଖୁ ମୋହର ପ୍ରିୟ
ଏହା ଦେଇ ମୋତେ ପୂଜିଲେ ସବୁ ଅଭିଷ୍ଟ ଥୟ । ୪୦ ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ କପି ସେନା ଆବର
ସାଷ୍ଟାଙ୍ଗେ ନମିଲେ ଅଭୟା ପଦ୍ମ ପାଦ ତଳର ।
ସିଦ୍ଧ ହେଉ ମନକାମନା ଦେବୀ ଆଶିଷ କଲେ
ବ୍ରହ୍ମଶର ଭେଦ ଶ୍ରୀମୁଖେ ବସ୍ତାରେଣ କହିଲେ ।
ଏହିରୂପେ ହେଲା ଅଷ୍ଟମୀ ଜଗତରେ ପ୍ରକାଶ
ଦଶଭୁଜା ରାମ ପୂଜିଲେ ଆସି ହୋଇଲେ ବଶ ।
ଓଷାଇତିମାନେ କଦଳୀ ନାରିକେଳ ଆବର
ସୀତାଫଳ, ପାଣିକଖାରୁ, ଫୁଲ, ବେଲ ପତର ।
ଦୁର୍ବାକ୍ଷତ ସଙ୍ଗେ ବରତମାନ ଦିଅ ଚଢ଼ାଇ
ହୁଳ ହୁଳି ଦିଅ ସୁଦୟା କରିବେ ମହାମାୟୀ ।
ଛପନ ପଦରେ କ୍ଷିପ୍ର ଗ୍ରନ୍ଥ ସମ୍ପୂର୍ଣ୍ଣ ହେଲା
ଦୁର୍ଗାପଦ ଧ୍ୟାୟି ଗୋବିନ୍ଦ ଚନ୍ଦ୍ର ଗୀତେ କହିଲା ।

—*—

## ତୃତୀୟ ଛାନ୍ଦ

ଚମ୍ପାବତୀ ନାମେ ନଗରୀ ରାଜା ଧର୍ମସେନ
ଅତି ଧାର୍ମିକ ସେ ପାଳନ୍ତି ପ୍ରଜା ପୁତ୍ର ସମାନ ।
ପାଟ ମହାଦେଈ ତାଙ୍କର ନାମ ମଦନାବତୀ
ସର୍ବ ସୁଲକ୍ଷଣୀ ଅରୁଣା ନାମେ ଏକ ଦୁହିତା ।
ରମ୍ଭା ଜିଣି ରୂପ, କୁମାରୀ ପୂର୍ଣ୍ଣ ଷୋଳବରଷ
ସ୍ୱର୍ଗ ଅପସରୀ ଆସିଣ କବା ମର୍ତ୍ତ୍ୟେ ପ୍ରକାଶ ।
ଯଉବନ ଚିହ୍ନ ସକଳ ଅଙ୍ଗେ ଦେଲାଣି ଦେଖା
ରଙ୍ଗେ ଶଶି ସଙ୍ଗେ ବନ୍ଧୁରେ ଚଢ଼େ ନ ଥାଇ ଦଣ୍ଡା ।
ଗ୍ରୀଷ୍ମେ ଯେମା ଦିନେ କଉଳ ଗଡ଼ ଗଲାଣି ବେଳ
ଝୁଲଝୁଲ ଉଦ୍ୟାନକୁ ଯେ ବାଳୁ ତୋଳିବା ଫୁଲ ।
ହରଷରେ ରାଜ ଉଦ୍ୟାନେ ପରବେଶ ହଉବେ
ଫୁଲମାନ ତୋଳି ଖେଳନ୍ତି ଯଉବନ ଗରବେ ।
ବୀରସେନ ନାମେ ସୁଧୀର ରାଜା ମନ୍ତ୍ରୀ ପ୍ରବର
ପତ୍ନୀ ନାମ ଅଟେ କମଳା ସେବେ ଦୁର୍ଗା ପଦ୍ମର ।
ମତି ଭକ୍ତି ଥାଇ ଦେବୀଙ୍କ ସଦା ଅମ୍ବିକା ପାଦେ
ପୁତ୍ରକନ୍ୟା ଦୁଇ ଲଭିଲେ ଭଗବତୀ ପ୍ରସାଦେ ।
ମାଳତୀ ମଦନ ସୁନ୍ଦର ଅଟେ ନାମ ତାଙ୍କର
ବାଳିକାକୁ ଦୁହେଁ ସେବନ୍ତି ଭଗବତୀ ପଦ୍ମର ।
ନିର୍ମଳ ମନରେ ଅଭୟ ପଦେ ଭକତି କରି
ଜନମୀ ପ୍ରସାଦୁ ଥାଆନ୍ତି ବେଗ ଶୋକ ପାଶୋରି ।
ମଦନ ସୁନ୍ଦର ଆସଇ ଅଶ୍ୱ ଉପରେ ଚଢ଼ି
ସୁକୁମାରୀ ଅଙ୍ଗେ ଭୂଷଣମାନ ଯାଇଛି ଜଡ଼ି ।
ବୁଲି ବୁଲି କ୍ରମେ ମଦନ ତୃଷା ଆତୁର ହୋଇ
ଜଳ ପାନ ଆଶେ ପ୍ରବେଶ ରାଜ ଉଦ୍ୟାନେ ଯାଇ ।

ରାଜଜେମା ବସି ପୋଖରୀ କୂଳେ ସଖି ସଙ୍ଗରେ,
ହସ କଉତୁକେ ସଜାଡ଼ି ଗୁନ୍ଥି କୁସୁମ ହାର ।
ମନ୍ତ୍ରୀ, ସୁତ ତୃଷା ଆତୁରେ ତହିଁ ମିଳିଲେ ଆସି,
ଦେଖିଲେ ମରତେ ଉଇଁଛି ପୂର୍ଣ୍ଣ ଶରଦଶଶୀ ।
ବିସ୍ମୟେ ଅରୁଣ ନନ୍ଦନ ତୃଷ ସରସୀ ଜଳ,
ପାନକଲେ ତୃଷା ଆରତ ତା ନୟନ ଯୁଗଳ ।
ମଦନସୁନ୍ଦର ସୁନ୍ଦର ରୂପ ଦେଖି ସୁନ୍ଦରୀ,
ମନେ ମନେ ହୃଦ ଆସନେ ବର ନେଲାଣି ବରି ।
ଲୁଚିତସ୍ଥୁ ଯନ୍ତ୍ରୁଁ ଏକତ୍ରେ ଆସି ହେଲେ ମିଳନ,
ହସିଣ ଅରୁଣା ପୁଚ୍ଛିଲେ ଆଗମନ କାରଣ ।
ମଦନ ସୁନ୍ଦର ମଧୁରେ ଭାଷେ ପିଇବ ଜଳ,
ଅରୁଣା କରୁଣା ଧୁଆଁଇ କହେ ଲାଗିବ ମୂଲ ।
ସୁବର୍ଣ୍ଣ ମୁଦ୍ରିକା ମଦନ ଜେମା ହସ୍ତରେ ଦେଲେ,
ରାଜଜେମା ଦେଲେ ଲଗାଇ ପ୍ରୀତିବରଣମାଳା ।
କିଶୋର କିଶୋରୀ ଗୁପତ ପ୍ରଣୟକୁ ରଚିଲେ,
ସଙ୍ଗ ସହଚରୀ ବିସ୍ମୟ ପରମାଦ ଗଣିଲେ । ୧୦ ।
ଦିନୁଦିନ କ୍ରମେ ବଢ଼ିଲା ପ୍ରୀତି ଲୀଳା ଗୁପତ,
ମଚାଳିଆ ଲୀଳା ଭିଆଣ କଲେ ଜଗତମାତ ।
ମନ୍ତ୍ର:ବାଣୀ ଦିନେ କହିଲେ ରାଜା ମୁଖ ଅନାଇ,
ଯୁବା ଝିଅ ଘରେ ରଖିବା ଅବହିତ ଅଟଇ ।
ବିବାହ ବୟସ ଝିଅର ଆସି ହେଲା ପ୍ରବେଶ,
ଝିଅ ଯୋଗ୍ୟବର ବହନ କର ହେ ନରଈଶ ।
କହିଲେ ନୃପତି ଜେମାର ଶୁଭ ବିବାହ ପାଇଁ,
ରୂପେ ଗୁଣେ ବାଛି ରଖିଛି ସୁକୁମାର କୁଆଁଇ ।
କୁମାରୀ ପାଟଣା ରାଇଜେ ଜେମା ଶ୍ୱଶୁର ଘର,
ମାଘ ଶୁକ୍ଳ ଶୁଭ ପଞ୍ଚମୀ ଲଗ୍ନେ କରିବା ବର ।

ବାହାଘର କଥା ଶୁଣିଣ ହେମା ଆସିଲା ଧାଇଁ
କହିଲା ମାଆଙ୍କୁ ଆନରେ ବିଭା ହୋଇବି ନାହିଁ ।
ଯଦି କହୁ ଝିଅ ରାଇଜେ ରହୁ କରିବ ଘର,
ଜୁଆଇଁ କରିଣ ବାନ୍ଧନ କର ମଦନ ସୁନ୍ଦର ।
କହିଲେ ରାଜନ ଝିଅଲୋ ଶୁଣ ମୋର ବଚନ,
ମନ୍ତ୍ରୀ ପଦେ ତାର ପିଅର ଖଟେ ମୋର ଚରଣ ।
ରାଜ ହେମା ହେଲ ବିବାହ ସ୍ଥିର ସୁକରଣ୍ଠାକୁ,
ଅବହିତ କଥା ସିନାଲୋ ଅପଖ୍ୟାତ କୁଳକୁ ।
ଆନ ବର ବାଛ ହେମା ଲୋ ଦେଖି ରାଜକୁମର
ହେମା କହେ ନଷ୍ଟେ ମରିବ ତେବେ ଖାଇ ଜହର ।
ଶୁଣିଣ ରାଜନ ଅନ୍ତରେ ହେଲେ ଚିନ୍ତିତ ଅତି,
ଯେତେ ବୁଝାଇଲେ ଝିଅର ଏକା ମଦନ ପତି ।
କର୍ମ ଫୁଲ ଫୁଟି ବିକାଶ କଲା ମନ୍ଦକ ବାସ,
ଦାସୀ ମୁଖୁ ରାଜା ଶୁଣିଲେ ଗୁପ୍ତ ପ୍ରୀତି ସନ୍ଦେଶ ।
ବିଚାରିଲେ ଝିଅ କୁଳରେ ଦେଲା ଲଗାଇ କାଳି,
ଲୋକ ଅପବାଦ କଥାକୁ ମନେ ବସିଲେ ଭାଳି ।
ମଦନସୁନ୍ଦର ପାଇଁକି ଝିଅ ବସିଛି ରୁଷି,
ମରାଇବି ମନ୍ତ୍ରୀ କୁମର ଗୁପ୍ତଘାତକ ପେଷି ।
ମଦନସୁନ୍ଦର ରକ୍ତ କାଳି କରିବ ଟିକା
କଳଙ୍କ ମେଣ୍ଟିବ କୁଳର ଯିବ ହୃଦୟୁ ଡଙ୍କା ।
ମନ୍ତ୍ରୀ କାନ ନୋହୁଁ ଦ୍ରଷ୍ଟାରୁ ତାକୁ ପାରଧିପାଇଁ
ଗୁପତେ ଘାତକ ସଙ୍ଗରେ ଦେବ ବନେ ପଠାଇ ।
କନେ ମନ୍ତ୍ରୀ ସୁତ ମାରିବ ହେମା ମଙ୍ଗଳ ପାଇଁ
ବିଷ୍ଣୁର ନୃପତି ଶୋଇଲା ଚିନ୍ତ ପଲଙ୍କେ ଯାଇ ।
କାଢ଼ କହେ ପ୍ରିୟୁ ଜନନୀ ଆଗେ ସେ ହେମାଦେଇ
ଆନ କାହା ଗଳେ ବରଣମାଳା ଦେବ ଲୋ ସହି ।

ମଦନ ସୁନ୍ଦର ଯାହେତ ଶୀବ ସାରିଛୁ ବିକ
ନାସ୍ତି କଲେ ପିତା ମରିବ ନଷ୍ଟେ ଗରଳ ଢୋକ ।
ସଖୀ ଏକ ହସେ ଅରୁଣା ଶୁଣ ମୋର ଉତ୍ତର;
ହର ମନୋହାସ ହରିବେ ମନ ବେଦନା ତୋର ।
କାଲି ମହାଷ୍ଟମୀ ବରତ ହେବ ଆମର ପୂଜା,
ହେବ ମନବାଞ୍ଛା ପୂରଣ ସେବନ୍ତେ ଦଶଭୁଜା ।
ଅମ୍ବିକା ପ୍ରସାଦେ ଲଭିବୁ ସଖି ମଦନ ବର,
ପ୍ରଭାତରୁ ପୂଜା ବିଧାନମାନ ଯୋଗାଡ଼ କର ।
ବସ୍ତ୍ରାଳଶ ପଦେ ଭୃଷସ୍ତୁ ଛନ୍ଦ ହେଲା ପୂରଣ
ହରଗୋବିନ୍ଦ ଚନ୍ଦ୍ର କହି ଦୁର୍ଗା ପଦେ ଶରଣ । ୪୪ ।



## ଚତୁର୍ଥ ଛାନ୍ଦ

ନିଶି ଶେଷେ ଉଷା ନବୀନ ସାଜେ ମଣ୍ଡିଲା ଧରା,
ପ୍ରକୃତି ସୁନ୍ଦରୀ ମେଲିଣ ଦେଲା ଶୋଭା ପସରା ।
କାଉ ରବ ଦେଲା ବସିଣ ବଢ଼ ସକାଳୁ ଡାକେ
ଗେହ୍ଲେଇ ଝିଅକୁ କମଳା ଆଣି ଧଇଲେ କୋଳେ ।
ମୃଦୁ ମୃଦୁ ହସି କହନ୍ତି କରେ ଆଉଁସି ଶିର,
ଆଉ ଦୁଇଦିନେ ଯିବୁଲୋ ମାଆ ଶ୍ୱଶୁରଘର ।
କେତେ ଖେଦ ଯାଉ ସକାଳ ଆସି ହେଲାଣିପରା
ହସିବେ ଲୋ ଶାଶୂ ନଣନ୍ଦ କେତେ କରି ଟାପରା ।
ନ ଶିଖିବୁ ଯଦି ଆଟ୍ଟୁ ଲୋ ଘରକରା ଆତୁର
ମାଆଘର ଦୁଇଦିନଆ ସତେ ଚରିକ ବଟା,
ବସିଣ ଅରୁଣା ନୁଆଇଁ ଦେଲା ତଳକୁ ମଥା ।
କହିଲେ ଜନନୀ ଆଜ ଲୋ ମହା ଅଷ୍ଟମୀ ବ୍ରତ
ଉପବାସେ ଦୁର୍ଗା ପୂଜିଲେ ହୁଏ ସାଇର ହିତ ।

ମଦନସୁନ୍ଦର ଭାଇର ଶୁଭ କାମନା କରି,
ଉପବାସେ ରହି ନିର୍ମଳ ମନେ ସେବେ ଶଙ୍କରୀ ।
ଭଉଣୀର ଭାଇ ଭରସା କଥା ସଂସାରେ ଅଛି,
ଭାଇ ସୁଖେଥିଲେ ତୋହର ଊଣା ନୋହିବ କିଛି ।
ସମ୍ପଦେ ବିପଦେ ସଂସାରେ ହୁଅଇ ସାହା ମାଆ,
ଭାଇ ବିନା ସୁଖେ ଦୁଃଖେ କେ ହେବ ପଛରେ ଠିଆ ।
ଭାଇକୁ ଭଗାରି ବୋଲନ୍ତି ଅତି ମୂରୁଖ ପଣେ,
ଭାଇ ବିନା ଭବେ ଭରସା ଆଉ କେ ନାହିଁ ଜଣେ ।
ମନକଥା ସେହି ଜାଣଇ ବରଷକରେ ଥରେ
ଦୁଆର ମଡ଼ାଇ ସଂସାର ମୁହଁ ଉଜ୍ଜ୍ୱଳ କରେ ।
ଦୁର୍ଗତି ନାଶିନୀ ଦୁର୍ଗାଙ୍କ ପଦ ସେବିବୁ ଯେବେ,
ଦୁର୍ଗା ରଖିଥିବେ ଭାଇକି ତୋର ସର୍ବ ଶୁଭେ ।
ମାଳତୀ କହୁଛି ମାଆ ଗୋ ବ୍ରତ ପାଳିବି ମୁହିଁ,
ଉପବାସ ବିଧି ବିଧାନ ମୋତେ ଦିଅ ବତାଇ ।
କୋମଳ ବଚନେ କମଳା କହୁଅଛି ତିଆରି
ଫୁଲ ଫଳ ଆଠ ବର୍ଣ୍ଣର ଆଣି ଯତନ କରି ।
ଶଏ ଆଠ ଦୁବ ନିର୍ମଳ ସ୍ଥାନୁ ତୋଳି ଆଣିବୁ,
ଶହେ ଆଠଗଣ୍ଡା ଚାଉଳ ବାଛି ଯତ୍ନେ ରଖିବୁ ।
ଦେବୀଙ୍କୁ ତୁଳସୀ ଦେବୁନି ଯୋଗ୍ୟ ଚନ୍ଦନ ଡାଳ,
ଆଣିବୁ ଅଁଳା ସଙ୍ଗତେ ଶହେ ବେଲ ପତର ।
ସ୍ନାନ ପାଇଁ ଯିବୁ ହଳଦୀ ବଟାଅଁ ଏକାଇ,
ଘାଟପୂଜାବିଧି ଝିଅଙ୍କେ କହୁଅଛି ବୁଝାଇ ।
ବାଲୁକା ବେଦୀଏ ସ୍ଥାପିବୁ ଦୁର୍ଗା ପଦ୍ମର ଧାୟୀ
କାଠି ସ୍ୱରଖଣ୍ଡ ପୋତିବୁ ତାର ଉପରେ ନେଇ ।
ହଳଦୀ ଅରୁଆ ଚାଉଳ ଆଗେ ବନ୍ଦାଇ ଦେବୁ,
ଫୁଲସଙ୍ଗେ ଦେବୁ ଚଢ଼ାଇ ଚକ କାକୁଡ଼ି ସବୁ ।

ନାଭି ପରିମାଣ ଜଳରେ ବେଗେ ସ୍ନାହାନ ସାରି
ଏକମୁହାଁ ହୋଇ ଘରକୁ ଫିଅ ଆସିବୁ ଫେରି ।
ଧନଯାକ ରହି ଉପାସ ଗନ୍ଧ ବେଳ ପ୍ରହରେ
ପୂଜିବୁ ଅଭୟା ଚରଣେ ଷୋଡ଼ଶ ଉପଚାରେ ।
ଦୁର୍ବାକ୍ଷତ ସଙ୍ଗେ ବରତ ବାନ୍ଧି ଦେବୁ ଚଢ଼ାଇ
ଦ୍ୱିଜ ମୁଖୁ କଥା ଶୁଣିବୁ ଅତି ହରଷ ହୋଇ ।
ଦକ୍ଷିଣା ଦେଇଣ ଆଚାର୍ଯ୍ୟ ମନ ତୋଷିବୁ ଯେବେ,
କଥା ଶୁଣା ତୋର ସଫଳ ଲଭ ହୋଇବ ତେବେ ।
ପ୍ରଭାତୁ ଉଠିଣ ସ୍ନାନାଦି ପୂର୍ବପରି ସାରିବୁ,
ଦଧି ମଧୁ ସଙ୍ଗେ ମିଶାଇ ସାତ ପଣା ଭକ୍ଷିବୁ ।
ପାଳଟିଣ ନୂଆ ବସନ ଶୁଚି ପିନ୍ଧିବୁ ଯାଇ,
ଭାଇକୁ ଉତ୍ତମ ଆସନେ ଡାକି ଦେବୁ ବସାଇ ।
ଦୁର୍ଗା ପଦେ ଚଢ଼ା ଅକ୍ଷତ ଦୁବ ଯତନେ ଆଣି
ଦେଇ ଅଷ୍ଟଅଙ୍ଗ ଯୋଡ଼ିବୁ ଥର ଶତେକ ଗଣି ।
କହିବୁ ଦୁର୍ଗେ ଗୋ ! ଭାଇର ମୋର ଅରିଷ୍ଟ ଯାଉ
ସୁଦଶା କର ମୋ ଭାଇଟି ସର୍ବ ଶୁଭରେ ଥାଉ ।
ଗୋଟି ଗୋଟି କରି କମଳା ସବୁ ଦେଲେ ବଢ଼ାଇ
ବରତ ପାଳନ୍ତି ମାଳଙ୍ଗୀ ଅତି ହରଷ ହୋଇ ।
ଏଥୁ ଅନ୍ତେ ଆନ ଚରିତ ଶୁଣ ହୋଇ ହରଷ
ଅଭୟା ମନ୍ଦିରେ ଅରୁଣା ଯାଇ ହେଲା ପ୍ରବେଶ । ୩୦ ।
ଧୂପ ଦୀପ ଫୁଲ ଚନ୍ଦନେ ରକ୍ତମନ୍ଦାର ମାଳେ,
ପୂଜିଣ ଶରଣ ପଶିଲା ଦେବୀ ଚରଣ ତଳେ ।
ପୂଜିଣ ପ୍ରସାରି ଅରୁଣ ହସ୍ତେ କରି ଭକତି,
କୃପା କର ମାତ ପ୍ରାପତ ହେଉ ମଦନ ପତି ।
ମନ୍ତ୍ରନେ ହସିଲେ ଅଭୟା ବାଞ୍ଛା ହେଉ ସଫଳ,
କ୍ଷଣକେ ପଡ଼ିଲା ମାଆର ମଥା ମନ୍ଦାର ଫୁଲ ।

ଜନନୀ କରୁଣା ଅରୁଣା ମନେ ବିଗୁର କରି,
ଘରକୁ ଫେରିଲ ଘେନିଣ ଫୁଲ ଭକତି କରି ।
ମହାରାଜା ଏଣେ ଘାତକ ସଙ୍ଗେ କରି ବିଚାର,
ଜୁଆସକୁ ନେଲେ ଡକାଇ ସେ ମଦନ ସୁନ୍ଦର ।
କହିଲେ ଶରଧା କରିଛୁ ଝିଅ ମୃଗ ମାଉଁସେ,
ଧନୁଧରି ବେଗେ ବନକୁ ଯାଅ ଶିକାର ଆଶେ ।
ଲୋକ ଜଣେ ଯିବ ସଙ୍ଗର ବନେ ନ ଯିବ ଏକା
ସାହା ହୋଇ ସଙ୍ଗେ ରହିବ ଟଗ୍ରେ ନ ଥିବ ବକା ।
ଧନୁଶର ଧରି ହରଷେ ରାଜା ଆଦେଶ ପାଳି,
ଘାତକ ସଙ୍ଗରେ କୁମର ଗଲ ବନକୁ ଚଳି ।
ନ ପାଇଲେ କାହିଁ ଶିକାର ବୁଲି ଜଙ୍ଗଲ ଯାକ,
ତରକ ଦେଖିଣ ସ୍ଖଳଇ ପଛେ ପଛେ ଘାତକ ।
ନିବିଡ଼ ଅରଣ୍ୟ ମଧ୍ୟରେ ଦୁହେଁ ହେଲେ ପ୍ରବେଶ,
ନ ପାରିଲ ଜାଣି କୁମାର ରାଜା କୁଟ ଆଦେଶ ।
ଜନଶୂନ୍ୟ ସ୍ଥାନ ଘାତକ ଯତ୍ନେ ନେହେ ଦେଖିଲା,
ପଛରୁ କୁମର ବଧିବା ପାଇଁ ତିଆର ହେଲା ।
ଅନ୍ତରାଳେ ଥାଇ ଅଭୟା ମାୟା ଦେଲେ ଭୁଆଇ,
ବ୍ୟାଘ୍ର ଏକ ଧାଇଁ ଆସୁଛି ମୃଗ ପଛେ ଗୋଡ଼ାଇ ।
ଏହା ଦେଖି ଦୁହେଁ ଅନ୍ତରେ ଲଭି ବହୁତ ଭୟ
ମନେ ମନେ ହେଜି ବସିଲେ ଜୀବନର ଉପାୟ ।
ପ୍ରାଣର ବିକଳେ ଘାତକ ତହୁଁ ଗଲା ଦଉଡ଼ି,
ମୃଗ ଛାଡ଼ି ବ୍ୟାଘ୍ର ଘାତକ ପରେ ବସିଲା ମାଡ଼ି ।
ବୁକୁ ବିଦାରିଣ ଦଶନେ ପାନ କଲା ରୁଧିର,
ମଦନ ପଛରେ ଲୁଚିଲା ମୃଗ ହୋଇ କାତର ।
ବିସ୍ମୟେ ମଦନ ସୁନ୍ଦର ତାକୁ ଧଇଲା ଯାଇ,
ଘାତକକୁ ମାରି ଜୀବନେ ବ୍ୟାଘ୍ର ଗଲା ପଳାଇ ।

ରଖିଲେ ଅନୁସ୍ତ୍ରା ଅଭନ୍ତ ହାନେ ଭାସ ଜୀବନ,
ମୃଗ ଶିଶୁ ଯେଉଁ ସଙ୍ଗରେ ଚାତୁରିଜ୍ଞ ମଦନ ।
ଷଟପଦ ନାଗିନୀ ବିପଦେ ସାହା ହୋଇବେ ଯାକୁ,
ନର ସୁର ହୋଇ ବଇରୀ କିସ କରିବେ ତାକୁ ।
ଛୟାଳିଶ ପଦେ ଚତୁର୍ଥ ଛାନ୍ଦ ସମ୍ପୂର୍ଣ୍ଣ ହୋଇ
ଦୁର୍ଗା ପଦ ଧ୍ୟାଇ ଗୋବିନ୍ଦ ଚନ୍ଦ୍ର ଗୀତେ କହଇ । ୪୬ ।



## ପଞ୍ଚମ ଛାନ୍ଦ

ଗୃହେ ଥାଇ ଏଣେ ରାଜନ ମନେ ଭାଳନ୍ତି ବସି,
ଫେରି ନ ଆସିଲା ନାତିକ ସନ୍ଧ୍ୟା ହୋଇଲା ଆସି ।
କାର୍ଯ୍ୟ ହୋଇଥିବ ସଫଳ ଏଣୁ ବିଳମ୍ବ ତାର;
ମରିଥିବ ନିଶ୍ଚେ ମଦନ ଘାତକର ହସ୍ତର ।
ପ୍ରକାଶ କରିବ ଶିକାର ଅର୍ଥେ ଜନବନ୍ଧଙ୍କୁ,
ଘୋରବନେ ବାଘ ଖାଇଲା ମଦନ ସୁନ୍ଦରଙ୍କୁ ।
ଏସନ ସମୟେ ମୃଗ ଶିଶୁକୁ ଧରି ମଦନ,
ପରବେଶ ହେଲା ହରଷେ ଯହିଁ ଅଛେ ରାଜନ ।
ବିସ୍ତାରି କହିଲା କାନନେ ଘଟିଥିବା ବୃତ୍ତାନ୍ତ
ଶୁଣିଣ ବିସ୍ମୟେ ରାଜନ ହେଲେ କପାଳେ ହାତ ।
ଛଳ ବାକ୍ୟେ ପୁଣି କହିଲେ ବାବୁ ନ ଜାଣ କିଛି,
ନିୟତି ନିୟମ ଲଙ୍ଘିବା ସାଧ୍ୟ କାହାର ଅଛି ।
ଶ୍ରମ ଲଭିଅଛୁ ଶିକାର ଆଶେ ଭ୍ରମି କାନନେ,
କ୍ଳାନ୍ତ ଦୂରକର ବସିଣ କ୍ଷଣେ ସୁଖ ଆସନେ ।
ବ୍ୟାଘ୍ର ମୁଖୁଁ ମୃଗ ଆଣିଛ ହୃଦେ ବାନ୍ଧି ସାହସ,
ମୃଗ ପାଇ ଯେମା ମନରେ ନିଶ୍ଚେ ହେବ ହରଷ ।
ମନେ ବିଚାରିଲା ରାଜନ ବାରେ ଗଲା ବରତ,
ଭୋଜନେ ଭୁଞ୍ଜାଇ ଜହର ବିନାଶିବ ଅରାତି ।

କଣ୍ଠ ବାକ୍ୟ ତୋଷି କୁମର ଅନ୍ତପୁରକୁ ଗଲେ,
ଭୋଜନରେ ବିଷ ମିଶାଇ ଯେବେ ପ୍ରବେଶ ହେଲେ ।
କହିଲେ ହରଷେ ଦେଇଛୁ ଝିଅ ଏ ଉପହାର,
ପ୍ରୀତିଭରେ ତନ୍ତ୍ରି ମଦନ ସବୁ କଲା ଆହାର ।
ବେଳୁ ବେଳ କାଳ ଗରଳ କ୍ରମେ ଅଇଲା ଘୋଟି,
ଅଜ୍ଞାନେ ପଡ଼ିଲେ କୁମର ମଞ୍ଚ ଉପରେ ଲୋଟି ।
ଦେଖିଣ ରାଜନ ମନରେ ଅତି ହରଷ ହୋଇ,
ଗୁପତେ ତଣ୍ଟିଆ ମଝିରେ ତାଙ୍କୁ ଦେଲେ ଭସାଇ ।
ରାତି ଦୁଇଘଡ଼ି ଗଡ଼ିଲା ନାହିଁ ପୁଅର ଦେଖା,
ବହୁରି ବହୁରି କମଳା ମନେ ଲଭିଲେ ଶଙ୍କା ।
ମାଆ ଝିଅ ଦୁହେଁ ଉପାସେ ରହିଥିଲେ ବଧିରେ,
ପୂଜା ଆରମ୍ଭିଲେ ମାଆର ସେବା ଯେବା ବିଧିରେ ।
ନାନା ବର୍ଣ୍ଣ ରଙ୍ଗି ଲହିଲେ ଆମ୍ବିକା ଚନ୍ଦ୍ରପଟ୍ଟ,
ତାର ତଳେ ଦ୍ରବ୍ୟ ଆସନେ ସ୍ଥାପି ରଖିଲେ ଘଟ ।
ନାରିକେଳ ଚୂତପଲ୍ଲବ ରକ୍ତ ଝୀନ ବସନ,
ଘଟପରେ ସ୍ଥାପି ମଣ୍ଡିଲେ ଦେଇ ଫୁଲ ଚନ୍ଦନ ।
ଶୁଭ ହୁଳହୁଳି ପକାଇ ଦେଲେ ଜାଗର ଜାଳି,
ଷୋଳ ଉପଚାରେ ପୂଜିଲେ ଦୁର୍ଗା ଚରଣେ ଢାଳି ।
ବେଲପତ୍ର କଳାଦହନା ସବୁ ଅର୍ପି ଡାଳା,
ଫଳସଙ୍ଗେ ଦେଲେ ଛଡ଼ାଇ ରକ୍ତ ମନ୍ଦାର ମାଳ ।
ମଦନ ସୁନ୍ଦର ମଙ୍ଗଳ ମନେ କାମନା କଲେ,
ଫୁଲ ଦୁର୍ବାକ୍ଷତ ବରତ ଯତ୍ନେ ବଢ଼ାଇଦେଲେ । ୨୦ ।
କରଯୋଡ଼ି ତହୁଁ ମାଳଣୀ କହେ ଭକତି କରି
ଝିଅର ମୋହର ସରବ ଶୁଭେ ରଖ ଶଙ୍କରୀ ।
ପୁଷ୍ପାଞ୍ଜଳି ଦେଇ ଅଭୟା ପଦେ ଶରଣ ଗଲେ
ଭବମୟୀ ମାତା ଭକତ ପୂଜା ଭାବେ ଘେନିଲେ ।

ଭକତ ବତ୍ସଳା ବୋଲିଣ ଭବେ ଉଡ଼ଇବାନା,
ଭକତି କରିଣ ସେବିଲି ପଦରେ ମନକାମନା ।
ଭକତିରେ ବଶ ହୋଇଲେ ଭାବ ଦେଖି ତାଙ୍କର,
ଭକତ ଆତଙ୍କ ଫେଡ଼ିବା ପାଇଁ ହେଲେ ବାହାର ॥
ମଦନ ସୁନ୍ଦର ନିଧନେ ହୋଇ ହରଷ ଅତି,
ସୁଖ ଶେଯେ ଶୋଇଅଛନ୍ତି ଯହିଁ ସେ ନରପତି ।
ଜଗତ ଜନନୀ ଆସିଣ ତହିଁ ପ୍ରତ୍ୟକ୍ଷ ହେଲେ,
ସ୍ୱପନେ ଗମ୍ଭୀର ବଚନେ ନୃପତିକି ଭାଷିଲେ ।
ଗର୍ବ କରି ଦାସେ ମୋହର ହେଲୁ ହେଳେ କଷଣ,
ଦେଇଛୁ ତା ମୋତେ ସହିଛି ଗୁଣ୍ଡ କରି ପାଷାଣ ।
ଦ୍ୱିପଦ ଦାଶିମା ମୋ ନାମ ମୋରେ ଶରଣ ଯାଇ,
ଭବେ କି ବିଭବ ନ ଲଭି ତାର ଦ୍ୱିପଦ ଥାଇ ।
ଶିଶୁ ଯାଇ ଥରେ ସାଷ୍ଟାଙ୍ଗେ ମୋ ଚରଣ ତଳକୁ,
ଦ୍ୱିପଦେ ମିଶିଣ ଦ୍ୱିପଦ କାସ କରିବ ତାକୁ ।
ମଦନ ସୁନ୍ଦର ନିଧନ ପାଇଁ ପେଷିଲୁ ବିନ,
କପଟରେ ବିଷ ମିଶାଇ ତାକୁ ଦେଲୁ ଭୋଜନ ।
ଗୁପତେ ନେଇଣ ଭସାଇ ଦେଲୁ ଅଥଳ ଜଳେ,
ଉଦ୍ଧରି ଧଇଲି ବାପକୁ ମୋର ଅଭୟ କୋଳେ ।
ମଦନ ସୁନ୍ଦର ଲଭିବା ପାଇଁ ଝିଅ ତୋହର,
କାମନା କରିଣ ଶରଣ ଗଲା ମୋର ପୟର ।
ପରସନେ ବର ଦେଇଛି ହେବ ନାହିଁ ଅନ୍ୟଥା,
ଦାସେ କୋପ ତନ୍ତ୍ର ମନରେ ମୋର ଦେଇଛୁ ବ୍ୟଥା !
ମଦନ ସୁନ୍ଦର ଶ୍ୱଶୁର ଶୁଭ ମନରେ ଭାଳି,
ବ୍ରତ ପାଳିଛି ମାଳଣୀ ମୋ ନାମେ ଜାଗର ଜାଳି ।
ମାଆ ତାର ପୁଅ ପାଇଁକି ମୋର ଶରଣ ଗଲା,
ମୋର କୃପା ବଳେ ପୁଅର କଷ୍ଟ ଊଣା ନୋହିଲା ।

କୋଟିଏ ଟୋପର୍ ଆସିଣ ମିଶି ଗୋଟିଏ ହେଲେ,
ନାଶି ନ ପାରବେ ମଦନେ ମୋର କରୁଣା ଥିଲେ ।
ହୁଲଗଣ୍ଡ ସ୍ୱପ୍ନୁଁ ସଜନ ଯନ୍ତ୍ର ଏଥୁ ଏଣିକି,
ମଦନଙ୍କୁ ଦିଅ ବିବାହ ତୋର ନେମାମଣିକ ।
ମାୟା କୁମରକୁ ନେଇଣ ଦେଇଅଛୁ ଉପାଇ
ମଦନ ସୁନ୍ଦର ଶୋଇଛୁ ଦେଖ ଉଆସେ ଯାଇ ।
ଜ୍ଞାନ ନାହିଁ ତାର ଘୋଟିଛି ଅଙ୍ଗେ ଟରଳ ନଶା,
ବନ୍ଧରେ ତ ଳାର ଉଞ୍ଜଣୀ କର ଅଷ୍ଟମୀ ଉଷା ।
କଟାଇଛୁ ମୋର ଚରଣେ ଦେଲେ ଅକ୍ଷୟ ଦୁବ,
ତାହା ଆଣିଦେଲେ ଜୁଆଇଁ ବିଷ ଦୂର ହୋଇବ ।
ଏତେ କହି ଦେବୀ ଉଆସ ତେଜି ଅନ୍ତର ହେଲେ,
ନିଦ୍ରା ତେଜି ରଜା ସ୍ୱପନ କଥା ହେଜି ବସିଲେ ।
ଯାଇଣ ଦେଖିଲେ ସତକୁ ସତ ମନ୍ତ୍ରୀ କୁମର,
ଅଜ୍ଞାନେ ଶୋଇଛି ଅପୂର୍ବ ତେଜ ଦିଶେ ତାହାର ।
ଜଗତ ଜନନୀ ଆଦେଶ ରାଜା ପାଳିବ ଭଲେ,
ସୁରସେନ ମନ୍ତ୍ରୀ ଡକାଇ ସବୁ ପ୍ରକାଶ କଲେ ।
ଫୁଲ ଦୁବ ଧରି ମାଳଣୀ ଆସି ପ୍ରବେଶ ହେଲା,
ସାତଥର ଗଣି ଉଣର ଦେହେ ଛୁଆଁଇ ଦେଲା ।
ମନ୍ତ୍ରମା ଦ୍ରବ୍ୟର ମନ୍ତ୍ରମାନ୍ତ୍ରୀ ଛାଡ଼ିଲେ ବିଷ,
ଉଠିଲେ ମଦନ ସୁନ୍ଦର ଅଙ୍ଗେ ହେଲେ ହରଷ ।
ମଦନ ସୁନ୍ଦର ନିକଟେ ରାଜା କ୍ଷମା ମାଗିଲେ ।
ଝିଅକୁ ମଦନ ସୁନ୍ଦର କରେ ସମର୍ପି ଦେଲେ ।
ଦୁର୍ଗତିନାଶିନୀ କୃପାରୁ କଥା ହୋଇଲା ଶେଷ,
ହୁନିହୁନି ଝିଅ ହରଷେ ମାଆ ହୋଇବେ ତୋଷ ।
ତମ ଶଙ୍କରଙ୍କ ସଙ୍ଗତେ ମୁହିଁ ଅଟଇ ଜଣେ,
ମୋ ପାଇଁ ଟିକିଏ ଗୁହାରି କର ମାଆ ଚରଣେ ।

# ଶ୍ରୀଦୁର୍ଗା ମାଳଶ୍ରୀ

ଜୟଦୁର୍ଗା ଦୁର୍ଗତି ନାଶିନୀ ବାସିନୀ ଶ୍ୱେତ ମାଳିକା
ଗୋ ମା ବିପଦକାଳକୁ ତୁ ହେଉ ସଖା ଗୋ ମା

ଗିରିଜାନନ୍ଦିନୀ ଗୁଣବନ୍ତୀ ବାଳି, ଗଳାରେ ଶୋଭେ ତୋ ମୁକୁତା ମାଳି । ଗଜ ଗମନୀ ବଦନ ଚନ୍ଦ୍ରମା, ତୋ ମା, କେ କହିପାରେ ତୋର ଗୁଣ ସୀମା ଗୋ । ୧ ।

ଜାନୁଯୁଗ୍ମ ରମ୍ଭାତରୁ ସମ କରଜ ଚମ୍ପକ ମାଳିକା ପାଣି ପଙ୍କଜ ଗମନ ମତ୍ତଗଜ ହସତ କୋକିଳ ବାଣୀକା ଗୁଗୁନ ଗନ୍ଧ ଗନ୍ଧ କୁସୁମ ମନ୍ଦ ମନ୍ଦ, ବଦନ ବନ୍ଦ. ଶୋଭିତ ଗୋ ମା, ପଦ୍ମରେ ଶୋଭେ ରଙ୍ଗ ଅଳତା ଗୋ । ୨ ।

ଚରଣେ ନୂପୁର ଘଣ୍ଟି ବାଜେଣି, ଶ୍ରୀଅଙ୍ଗେ ଶୋଭେ ତୋ ରଙ୍ଗ କାଞ୍ଚେଣି, ରଙ୍ଗବନ୍ଧନୀ, ରଙ୍ଗ ଢୋଳାବେନ ଗୋ ମା, ରଙ୍ଗମସ୍ତୁ ସଙ୍ଗ ବସ୍ତ୍ର ସୁହାଣି ବେଶ ମା, ଖଡ୍‌ଗ ଖର୍ପର ତ୍ରିଶୂଳ ମୁଦ୍‌ଗର ଗଦାପଦ୍ମ ଚତୁର୍ଭୁଜେ ଶୋଭିତ ଗୋ । ୩ ।

ବକ୍ଷେ ମୁଣ୍ଡହାର ମାଳ ଝର୍ଝର, ରୁଧିର ଧାର ଧାର ବିଳମ୍ବ ତପାଟି ଫର୍ଦ୍ଦଜଟା, ଜଟିଭ୍ରୁ ଭଙ୍ଗୀ ଭ୍ରୁକୁଟୀ ଶୋଭିତା ସୁସଞ୍ଜନାନାସିକା ଗୋ ମା' ଭୟଙ୍କରଦର୍ଶନ ବଦନ ଶଙ୍କା ଗୋ । ୪ ।

କର୍ଣ୍ଣେ ଖୀରବୋଲି ମୁକୁତାଝର କ୍ଷଣକେ ନୂଆ ଆନ ତୋର କ୍ଷଣେ ବାରାଙ୍ଗନା-କ୍ଷଣେ ଷୋଡ଼ଶୀ ଗୋ ମା । ଯେଉଁ ରୂପ ଦେଖି ଭୁଲିଲେ କାଶୀ ବାସୀ କନ୍ଦ୍ରା ଲବ୍ଧ ଲିବ୍ଧ ଦଶନ ଚନ୍ଦ୍ର ଚନ୍ଦ୍ର ରୁଚିର ସୁଶୋଭିତ ଗୋ । ୫ ।

କ୍ଷୀଣ କଟୀ ବାଘ, ମନ୍ଦ ମନ୍ଦ ହାସ ବଦନ ବିକଳିତ ଭାସିତା ଅଧର ନିନ୍ଦଇ ବିମ୍ବ ଫଳ ଚିବୁଁ କୁସୁମ ତିଳ ଫୁଲ ନାସିକା ଗୋ ମା, ସିନ୍ଦୁର ସୁନ୍ଦର ସୂର ନାସ୍ତିକା ଗୋ ମଥାମଣି ବିଦ୍ୟୁ ଭୁବନ ଯାଏ ଝଟକ ଦିଶଇ ଚିକୁର ପ୍ରପୁଞ୍ଜ ଦେଖିଲେ ଯୋଗ ଟଳେ ଚେତନେ ଯୋଗୀ ଗୋ ମ । କ୍ଷଣେ କାତ୍ୟାୟିନୀ କ୍ଷଣେ ଭୈରବୀ ଗୋ ଦନ୍ତ ରଟ, ଜିହ୍ୱା ଲହ ଲହ ଖଡ୍ଗ ଝମ ଝମ ଝମକତା ଗୋ । ୬ ।

ଦନୁଜ ଡର ଡର, ପ୍ରକମ୍ପେ ଅଡମ୍ବର ଶରଣ ଶରଣ ବର୍ଣ୍ଣିତା । ଡଡ ଡବ ଡମ୍ବରୁ ମୃଦଙ୍ଗ ଧୁରୁ ଧୁରୁ, ଫଟକ ଫିରି ଫିଙ୍କି ଫରବତା ଗୋ ମା, ତାଣ୍ଡବ ନୃତ୍ୟରେ ତୁ ଜଗଜିତା ଗୋ । ୭ ।

ସକଳ କଥାରେ ତୁମ୍ଭ ବଦନ । ତୋତେ ସୁମରିଲେ ରଘୁ ନନ୍ଦନ, ହରତା କରତା ତୁ ବରଦାତା ଗୋ ମା । ଶୂନ୍ୟରେ ରାମଙ୍କୁ ଦେଲୁ ବାରତା ଗୋ ମା । ମାର ମାର ଲଙ୍କ ଧ୍ୱଂସକର ଏକ ବାଟ ଦଶଶିର ଦଶାନନକୁ । ସଗୋତ୍ର ସହିତେ ମରନ୍ତୁ ସମସ୍ତେ ରାଜା କରିବ ବିଭୀଷଣକୁ ଗୋ ।୮। ଜନକ ଦୁହିତା ଜନଙ୍କର ମାତା କହି ଯା ତୋ ନିଜ ରାଜ୍ୟକୁ ଗୋ ମା, ଶୁଣିଥିଲେ ରାମ ତୋ ହୁକୁମକୁ, ଆଦେଶ କଲେ ଯେ ସୈନ୍ୟମାନଙ୍କୁ, ତକ୍ଷଁ ବାନରେ ବିଧ୍ୱଂସିଲେ ଲଙ୍କା ସୁଗ୍ରୀ ଅଙ୍ଗଦ ହନୁ ରଣ ରଙ୍କା ଦୈତ୍ୟ ବାନର ହେଲେ ମିଶାମିଶି ଗୋ ମା । ଘୋର ଯୁଦ୍ଧ କଲେ ଦିବସ ନିଶି, ସୁମିତ୍ରା ତନୁଜ ଧରିଣ ଧୈର୍ଯ୍ୟ ଇନ୍ଦ୍ର ଜିତକୁ ସେ ମାରିଲେ ଏକା ଗୋ । ୯ ।

ଶ୍ରୀରଘୁନନ୍ଦନ, କୋଦଣ୍ଡ ଧରିଣ ଦୈତ୍ୟ ଦଶମାଥ ଛେଦିଲେ ଏକା, ଋକ୍ଷ କପିମାନେ ଆନନ୍ଦ ହୋଇଣ, ଯେ ଯାହା ଭୁବନକୁ ଗଲେ ଗୋ ମା, ସୀତାଙ୍କୁ ଶ୍ରୀରାମ ଅଯୋଧ୍ୟା ନେଲେ ଗୋ । ୧୦ ।

ସଙ୍ଗେ ଥିଲେ ଯେତେ ନୃପତିଗଣ, ସୁଗ୍ରୀବ ଅଙ୍ଗଦ, ହନୁ ବିଭୀଷଣ, କେହି ତ ରକ୍ଷା ଗୋ ନ କରି ପାରି ଗୋ, ଆତଙ୍କେ ଡାକିଲେ ତୋ ନାମ ଧରିଗୋ, ଶୁଣି ଝଙ୍କାର ହସ୍ତୀଙ୍କ ହୁଙ୍କାର ଦେଖି ସୈନ୍ୟଗଣ ଶଙ୍କିଲେ ତାର, ଖଡ଼ଗ ଝଣ ଝଣ ଧନୁର ଟଣ ଟଣ ଶୁଣି ରଣ ଭୟେ ଭାଜିଲେ ଗୋ ମା, କହିଲେ ମନ ଇ ଚରଣେ ବନ୍ଦୋଇ କେତେ ବଳ ଖୋଜା ଯାଚିଲେ ଗୋ ।

ବନ୍ଧରେ ପଡ଼ିଲେ ନୃପତିବର, ମଣ୍ଡଳମଣି କିଶୋର ସୁନ୍ଦର, ତୁ ଯାଇ ଯତନ କଲେ ବିଜେ ସମର୍ପି ଦେଇ ତାଙ୍କୁ ତୋଷେ ରଜା ଗୋ ମା, ଆହନ୍ତୁ ନରେଶ, ହୃଅନ୍ତୁ ହରଷ, କରୁ କରୁ କୃପା ତାଙ୍କୁ ଯତନ, ହସ୍ତି ଗଜ ସୈନ୍ୟ ହୋଇ ତୋଷମନ, ବାହୁଡ଼ି ଆସନ୍ତୁ ବଦନେ ଗୋ, ତୋର କୃପାବଳେ ଶୀଘ୍ର ଦେଇ କଷ୍ଟ ମୋଚନ ଗୋ । ୧୨ ।

କହଇ ଭକ୍ତ ହେ କରି ବିନତି । ଯେନ ମୋ ଭକତି ତୁ ଦୟାବତୀ, ଅସୀମ ଅଟଇ ଯାର ମହିମା, କେ ବର୍ଣ୍ଣି ପାରିବ ତୋ ଗୁଣ ସୀମା । ଅଭୟ କାଳୀ ମା, ଆଲଙ୍କ ନାଶିନୀ, ସୁକାରୁଣୀ କଳେ ତୁ ବନ୍ଦଦ ତା ଗୋ । ୧୩ ।

କିଶୋର ପୃଷ୍ଠେ ଝିଜଦ୍ଧ ତୋହର, ଦୁଷ୍ଟ ଦନୁଜଙ୍କୁ କରୁ ସଂହାର । ଗଳାରେ ଶୋଭିତ ରକ୍ତ ମନ୍ଦାର, ବଳି ପଣ ଯେ ଦୟଣ‌ର ହାର ଗୋ ମା, ଭକ୍ତ କରୁ ତୁ ଅଙ୍କଟ ସନ୍ଥଜନେ ପଡ଼ିଥାଇ ତୁ ଏକା ଗୋ । ୧୪ ।

ଆଗପଦ ମୋର କୁହେଁ ରଚନା । ବିଷ୍ଣୁଦାସ୍ୟ ପଦଠାରୁ କଳ୍ପନା, ଦେଖିଲି ଅତି ବିଷାଦ ଚିତ୍ତରେ, ସଂସ୍କାରକ ହେଲେ ଦ୍ୱିତୀୟ କାରେ, ଗୋ ମା, ସଂଶୋଧିତ ପଦ ହୋଇଣ ଗଦ ଗଦ ଲେଖିଛି ମା ଗୋ କରୁଣା କଳେ । ୧୫ ।

ରଚୟିତାଙ୍କର ନାମ ଏଥିରେ ନଥିବାରୁ ମୁଁ ସନ୍ଦିଗ୍ଧ
ଚିତ୍ତରେ । ସମ୍ପୂର୍ଣ୍ଣରୂପେ ନଥିଲା ରଚନା ତେଣୁ ମନେ ମୋର ହେଲା
ଯନ୍ତ୍ରଣା ଗୋ ମା, ଭୁଲ ପୂରଣ ତୋ ଦୟାରୁ ପୁଣ, ବିପ୍ର ନରସିଂହ
ଜଣାଇ ଏକା ଗୋ । ୧୭ ।

ଶ୍ରୀ ଦୁର୍ଗାମଙ୍ଗଳ ସମ୍ପୂର୍ଣ୍ଣ

—o—

ମୁଦ୍ରଣ : ବିଶ୍ୱବିଦ୍ୟା ପ୍ରେସ୍, ଅଲିଶାବଜାର, କଟକ-୨

ସମସ୍ତ ପ୍ରକାର ପୁସ୍ତକ ମିଳବାର ଠିକଣା ।

ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର : ଶ୍ରୀ ବୈଦ୍ୟଧର ସାହୁ
ଅଲିଶା ବଜାର : କଟକ-୨
ଫୋନ୍ ନମ୍ବର—୨୪୭୯୭